ଟିଁଟିଁଆ ଛୋଟ ଚଢ଼େଇଟିଏ

ଡକ୍ଟର ଅରବିନ୍ଦ ପଟ୍ଟନାୟକ

ପ୍ରଥମ ସଂସ୍କରଣ-୨୦୦୭
ପ୍ରକାଶକ : ସରସ୍ୱତୀ
ଗୌରୀନଗର, ଭୁବନେଶ୍ୱର -୨

ଛବି : ତନୁଜ ମଲ୍ଲିକ
ଟାଇପ୍ ଓ ମୁଦ୍ରଣ : ସରସ୍ୱତୀ
ମୂଲ୍ୟ : ଟ. ୨୦/-

**Tintian Chhoto Chadheitiea**

Dr. Arabinda Patnaik

1st Edition : 2007

Published by Saraswati
Gourinagar ,Bhubaneswar-2
DTP & Printing : Saraswati
Illustration :Tanuj Mallik

**Price : Rs. 20/-**

# ଟିଁଟିଁଆ ଛୋଟ ଚଢ଼େଇଟିଏ



କଥାଟିଏ କହୁଁ, କିସ କଥା ?
ଟିଁ ଟିଁ ଆଁ ଚଢ଼େଇ ଚଢ଼ଉଣୀଙ୍କ କଥା
କାହିଁକି ?

କାରଣ, କଥାଟି ସତ ହୋଇଥିଲେ ଭଲ । ନହେଲେ ବି କ୍ଷତି ନାହିଁ । ସେମାନେ ତ କେବେହେଁ କଳି କରିପାରିବେ ନାହିଁ । ସେଥିପାଇଁ ।



କିନ୍ତୁ ମଣିଷ ? ଆରେ ବାପରେ ! ଭାରି ଭୟାନକ । ପିଲା ହୁଅନ୍ତୁ କି ବଡ଼ ହୁଅନ୍ତୁ, ସେମାନେ କଥା କଥାକେ ଆଖି ତରାଟି ମାଡ଼ି ଆସିବେ । ବାଡ଼ି, ପାଞ୍ଚଣ ଦିଆସିଲି କାଠି ଉଞ୍ଚେଇବେ । କୋଟ କଚେରି ଦେଖାଇବେ । ମନ ବିଗିଡ଼ିଗଲେ, ନାନା ଉପାୟରେ ଜବତ୍ କରି ବସିବେ । ତେଣୁ ମଣିଷମାନଙ୍କ ନାଁ ଧରି କିଛି କହିବି ନାହିଁ । ସେଇ ଟିଁ ଟିଁ ଆଁ ବା ଟିଟିଭ ନାଁରେ ହିଁ କଥାଟି କହିବି । ଭଲ । ନିରାପଦ ।



ଟିଁଟିଁଆ ଛୋଟ ଚଢ଼େଇଟିଏ । କୁନି ପିଲାଙ୍କ ପାପୁଲିଠାରୁ ବି ସାନ । ସେଇ ଚଢ଼େଇ ଦି' ପ୍ରାଣୀଙ୍କ କଥା କହିବି । ସେମାନେ ସମୁଦ୍ର କୂଳରେ ରହୁଥିଲେ ।



ସେଇଠି । ହଁ, ସେଇଠି ତ, ଚଢ଼ଉଣୀଟି ଅଣ୍ଡା ଚାରୋଟି ଦେଲା । ଦୁହିଁଙ୍କ ମନ ଭାରି ଖୁସି । ଏଇଥିରୁ ଛୁଆ ଚାରୋଟି ବାହାରିବେ । ମନରେ କେତେ ଆଶା, କେତେ ଭରସା ଖେଳିଗଲା । ସେଗୁଡ଼ିକୁ ସେଇଠି ବାଲିରେ ଘୋଡ଼ାଇ ଦେଲେ । ଭାବିଥିଲେ ନିରାପଦରେ ରହିବ । ଗଲେ ଆହାର ଆଣି ।



ବରୁଣ ଦେବତା ସବୁ ଦେଖୁଥାନ୍ତି । ତାଙ୍କୁ ବଡ଼ ମଜା ଲାଗିଲା । ସମୁଦ୍ର ତ ତାଙ୍କ ରାଇଜ । ସେ ଲହଡ଼ି ମାନଙ୍କୁ ପଠାଇଲେ । କହିଲେ- ଅଣ୍ଡା ଚାରୋଟି ଘେନି ଆସ ।



ଲହଡ଼ି ମାଳ ମାଳ ହୋଇ ମାଡ଼ି ଆସିଲେ । ଅଣ୍ଡା ଚାରୋଟିକୁ ଘେନି ଗଲେ । ବରୁଣ ଦେବତା ସେତକ ସମୁଦ୍ର ଗର୍ଭରେ ଲୁଚାଇ ରଖିଲେ ।



ଚଢ଼େଇ ଦୁଇଟି ବାହୁଡ଼ିଲେ । ଦେଖିଲେ ଅଣ୍ଡା ଚାରୋଟି ନାହିଁ । ସେଥିରୁ ଛୁଆ ଚାରୋଟି ବାହାରି ଥାଆନ୍ତେ । ସେମାନଙ୍କ କୋଳରେ ବଢ଼ିଥାନ୍ତେ । ପାଖରେ ବସିଥାନ୍ତେ । ଚରିବା, ଉଡ଼ିବା ଶିଖିଥାନ୍ତେ । ମନରେ କେତେ ଖୁସି ଆନନ୍ଦ । କେତେ ଅଶା ବସା ବାନ୍ଧିଥିଲା । ଆହା, ସେତକ ହଜିଗଲା । ଚଢ଼ଉଣୀଟି ବିକଳ ହୋଇ କାନ୍ଦିଲା । ବିକଳ ହୋଇ ବାଲିରେ ଗଡ଼ି

ଗଲା । ଚଢ଼େଇବି ତା ଦୁଃଖ ସମ୍ଭାଳି ପାରିଲା ନାହିଁ । ସେ ବି କାନ୍ଦିଲା । ଅଣ୍ଡା ତାରୋଟି ଭିତରେ ଥିଲା ସେମାନଙ୍କର ବାପା ମା ହେବାର ସପନ । କିଏ ନିଷ୍ଠୁର ସେଇ ସପନଟିକୁ ଭାଙ୍ଗିଦେଲା ? ଅକାରଣେ, ସେମାନଙ୍କର ଆଶା ଭରସାକୁ ମାଟିରେ ମିଶାଇ ଦେଲା ! ତା ବହପ ଜଳି ପୋଡ଼ି ଯାଉ ।

ତେବେ ବରୁଣ ଦେବତା ସମୁଦ୍ର ଭିତରେ ଥାନ୍ତି । ମନ ମଉଜରେ ସବୁ ଦେଖୁଥାଆନ୍ତି । ଲହଡ଼ିମାନେ ହସି ହସି ମାଳ ମାଳ ହୋଇ ମାଡ଼ି ଆସୁଥାନ୍ତି । କିଛି ବାଲି ଶାମୁକା ଓଜାଡ଼ି ଦେଉଥାନ୍ତି । ପୁଣି କିଛି ଘେନି ଫେରୁଥାନ୍ତି । ଟିଁ ଟିଁ ଆଁ ଚଢ଼େଇ ଦୁହେଁ ବିଚାର କଲେ- ସବୁ ଏଇ ସମୁଦ୍ର ଓ ଲହଡ଼ିମାନଙ୍କର କାମ । ଭାରି ରାଗି ଗଲେ । ଦାରୁଣ ଦୁଃଖ ସାଙ୍ଗରେ ରାଗ ମିଶିଗଲା । ମୁଣ୍ଡ ହଲାଇ ଗୋଡ଼ କଚାଡ଼ି କଚାଡ଼ି ଗାଳି ଦେଲେ । ଅଭିଶାପ ଦେଲେ । ଶପଥ କଲେ- ସମୁଦ୍ରର ସବୁତକ ପାଣି ପିଇଦେବେ । ସମୁଦ୍ରକୁ ଶୁଖାଇ ଦେବେ । ସାବାଡ଼ କରିଦେବେ ସମୁଦ୍ରକୁ । ସେ କିଏ ସେମାନଙ୍କ ଅଣ୍ଡା ନେଇଯିବାକୁ ? ଭାରି ସାହସତ ! ସେ ସାହସରେ ନିଆଁ ଲାଗୁ ।



ପୁରାଣରେ ଅଛି ଥରେ ଅଗସ୍ତି ଋଷି  ବରୁଣଙ୍କ ଉପରେ ଅସନ୍ତୁଷ୍ଟ ହୋଇଥିଲେ । ସମୁଦ୍ରର ପାଣିତକ ଚଳୁ କରିଦେଇଥିଲେ । ସାଗର ଶୁଖିଯାଇଥିଲା । ବରୁଣ ଦେବତାଙ୍କ ବହପ ଭାଙ୍ଗିଥିଲା । ସେ ଋଷିଙ୍କୁ କ୍ଷମା ମାଗିଥିଲେ ।

କିନ୍ତୁ ଟିଁଟିଁଆ ଚଢ଼େଇଟି ତ ଅଗସ୍ତି ନୁହେଁ, କି ସେମାନଙ୍କ କୁନି କୁନି ଥଣ୍ଟ ଅଗସ୍ତିଙ୍କ ପାପୁଲି ନୁହେଁ । ତଥାପି ସେମାନଙ୍କ ତ ରାଗ ଅଛି । ନ୍ୟାୟ ପାଇବାର ଅଧିକାର ଅଛି । ସାଗର ଯଦି ଅନ୍ୟାୟ କଲା ସେମାନେ ରାଗିବେ ନି ? ତାଙ୍କର ପୁଣି ଆପଣା ଜିନିଷରେ ଅଧିକାର ଅଛି । ତାଙ୍କ ଅଧିକାର ଆଉ ଜଣେ ଛଡ଼େଇ ନେବ, ସେମାନେ ସହିଯିବେ ? ନା କଦାପି ନୁହେଁ । ସେ ଦୁହେଁ ବାହାରି ପଡ଼ିଲେ ସଂଗ୍ରାମ ପାଇଁ ।

ଛୋଟ ଛୋଟ ଥଣ୍ଟ । ଏଡ଼ିକି ବକଟେ ପେଟ । ସେମାନେ ସମୁଦ୍ର ଯାକର ପାଣି ଶୋଷି ନେବେ କେମିତି ? ଲୋକ ହସା ହେବା କଥା । ତଥାପି ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବାକୁ ହେବ । ମନ ଭିତରେ ଡାକରା- କର ଅବା ମର ।

ସେ ଦୁହେଁ ଛୋଟ ଛୋଟ ଥଣ୍ଟରେ ପିଉଥାନ୍ତି ସମୁଦ୍ରର ପାଣି । ସେ ପାଣି ଭାରି ଲୁଣିଆ । ତଥାପି ପିଉଥାଆନ୍ତି । ଅଚେତ ହୋଇ ପଡ଼ିଯାଉଥାନ୍ତି । ପୁଣି ଚେତା ପାଇ ପିଉଥାଆନ୍ତି । ତାଙ୍କ ଜାତିର ଅନ୍ୟ କେତୋଟି ପକ୍ଷୀ ଏ ଦୃଶ୍ୟ ଦେଖିଲେ । ସେମାନଙ୍କ ପାଖକୁ ଆସିଲେ । ସବୁ କଥା ଶୁଣିଲେ । ଆଶ୍ୱାସନା



ଦେଲେ । ଜଗତର ସବୁ ଟିଁ ଟିଁ ଆଁ ଚଢ଼େଇ ଆସିଲେ । ସମୁଦ୍ର କୂଳରେ ସଭା ବସିଲା । କଥାଟା ସେମାନଙ୍କ ସଭାରେ ପଡ଼ିଲା । ସମସ୍ତେ ଶୁଣିଲେ । ବଡ଼େ ଚିତ୍କାର କଲେ । ଏକ ସ୍ୱରରେ ଗର୍ଜି ଉଠିଲେ ଆମ ଅଣ୍ଡା ନେବାକୁ ସମୁଦ୍ର କିଏ ? ଚାଲ ଶୋଷି ପକାଇବା ତାର ପାଣିତକ ।



ହଜାର ହଜାର ସଂଖ୍ୟାରେ ଟିଁଟିଁଆ ଚଢ଼େଇ ସେମାନଙ୍କ ଟିକି ଟିକି ଥଣ୍ଟରେ ଶୋଷିଲେ ସମୁଦ୍ରର ପାଣି । ଚେତା ହରାଇଲେ । ପୁଣି ଚେତା ପାଇ ପାଣି ଶୋଷିଲେ । କାଉ, ବଗ, ପାରା, ଆଦି ଦଳ ଦଳ ଚଢ଼େଇ ଆସି ଦେଖିଲେ । ଶୁଣିଲେ ସବୁ କଥା । ସମସ୍ତେ

କହିଲେ- ହଁ, ହଁ ବଡ଼ ଅନ୍ୟାୟ ହୋଇଛି । ଏଇ ସମୁଦ୍ରଟା କିଏ ଆମ ଅଣ୍ଡା ନେବାକୁ ? ଚାଲ ଶୋଷି ପକାଇବା ତାର ପାଣିତକ । ଜଗତଯାକର ଚଢ଼େଇ ଏକାଠି ହେଲେ । ସମୁଦ୍ରଯାକର ପାଣି ଶୋଷି ଦେବାକୁ ବାହାରିଲେ ।

ବରୁଣ ଦେବତା ମଜା ଦେଖୁଥାନ୍ତି । ତେଣେ କାର୍ତ୍ତିକେୟଙ୍କ ବାହନ ମୟୂର, ସରସ୍ୱତୀଙ୍କ ବାହନ ହଂସ, ଲକ୍ଷ୍ମୀ ଠାକୁରାଣୀଙ୍କ ବାହନ ପେଚା ଆଦି ମଧ୍ୟ କଥାଟା ଶୁଣିଲେ । ସେମାନେ ବି ଭାବିଲେ- ଇଏ କି କଥା, ବରୁଣ ଦେବତା କିଏ ଆମ ଅଣ୍ଡା ନେବାକୁ ? ସେମାନେ ବି ବାହାରିଲେ ଏଇ ମହା ସଂଗ୍ରାମରେ ସାମିଲ ହେବା ଲାଗି । ଗରୁଡ଼ଙ୍କ ପାଖରେ ଯେତେବେଳେ ଖବର ପହଞ୍ଚିଲା, ସେ ବି ବାହାରିଲେ । ନାରାୟଣଙ୍କୁ କହିଲେ- ପ୍ରଭୁ ପକ୍ଷୀ ଜଗତ ପ୍ରତି ବଡ଼ ଅନ୍ୟାୟ ହେଲାଣି । ଆମ ଅଣ୍ଡା ନେବାକୁ ବରୁଣ ଦେବତା କିଏ ? ମୋତେ ଆଶୀର୍ବାଦ କରନ୍ତୁ । ମୁଁ ଯିବି ତାଙ୍କ ସହିତ ସଂଗ୍ରାମ କରିବାକୁ । ଶୋଷିନେବି ସାଗରର ଜଳରାଶି ।

ଯେତେବେଳେ ଲକ୍ଷ୍ମୀ ଓ ସରସ୍ୱତୀଙ୍କ ବାହନମାନେ ଗଲେଣି, ସେତେବେଳେ ଉପାୟ କଣ ?



ଖଗପତି ନାରାୟଣ ତାଙ୍କ ବାହନ୍‌କୁ ଅନୁମତି ନ ଦିଅନ୍ତେ କେମିତି ? ତାହା ଦେଲେ । ଆଶୀର୍ବାଦ ବି କଲେ ।

ଗରୁଡ଼, ପକ୍ଷୀରାଜ । ସେ ମହାବିକ୍ରମରେ ଉଭା ହେଲେ ଆକାଶ ମାର୍ଗରେ । ତାଙ୍କର ବଡ଼ ବଡ଼ ଡେଣା



ହଲାଇ ହଲାଇ ଉଡ଼ି ଆସିଲେ । ଗଗନ ପବନ ଚହଲିଗଲା । ଗରୁଡ଼ଙ୍କ ଭୀଷଣ ରୂପଦେଖି ମୟୂର, ହଂସ, ପେଚାଙ୍କଠାରୁ ଘରଚଟିଆ, ମାଛରଙ୍କା, ଭଦଭଦଳିଆ, ବଣି, ଗୋବରା ଆଦି ଚଢ଼େଇମାନେ ବଳ ପାଇଲେ । ସେମାନଙ୍କର ପରାକ୍ରମ ବଢ଼ିଗଲା । ସମସ୍ତେ ବାହାରିଲେ ଶୋଷିନେବେ ସମୁଦ୍ରର ପାଣି ।



ଛାରଖାର କରିଦେବେ ବରୁଣଙ୍କ ସାମ୍ରାଜ୍ୟ । କାର୍ତ୍ତିକେୟ, ସରସ୍ୱତୀ, ଲକ୍ଷ୍ମୀ, ନିଜ ନିଜ ବାହନମାନଙ୍କର ଉତ୍ସାହ ଓ ଲଢ଼େଇ ଦେଖୁଥାନ୍ତି । ନାରାୟଣ ମଧ୍ୟ ହସି ହସି ଦେଖୁଥାଆନ୍ତି ଏଇ ଲୀଳା । ଟିଁ ଟିଁ ଆ, ହଂସ, ପେଚା, ମୟୂର, ଗୋବରା, ବଣି, ଗରୁଡ଼ ଯାଏ ସମସ୍ତଙ୍କ ମୁହଁରେ ସେଇ ଗୋଟିଏ ପ୍ରଶ୍ନ- ଆମ ଅଣ୍ଡା ନେବାକୁ ତମେ କିଏ ? ବରୁଣ ତ ମଜା ଦେଖୁଥିଲେ । ସେ କିନ୍ତୁ ପକ୍ଷୀ ଜଗତର ଏକତା ଓ କ୍ରୋଧ ଦେଖି ଡରିଗଲେ । ତାଙ୍କ ଖେଳ ଦୁନିଆ ଆଖିରେ ତାଙ୍କୁ ଖଳ କରି ଦେଖାଇଦେଲା । ଭାବିଲେ - ଏବେ କରିବେ କଣ ?

ଶେଷରେ ବରୁଣ ଦେବତା ଅଣ୍ଡା ଚାରୋଟିକୁ ଘେନି ବାହାରି ଆସିଲେ । ସେତକ ସମର୍ପି ଦେଲେ ଟିଁ ଟିଁ ଆଁ ଚଢ଼େଇ ପାଖରେ ।

ପକ୍ଷୀ କୁଳ, ସମୁଦ୍ର କୂଳରୁ ମହାଆନନ୍ଦରେ ବାହୁଡ଼ି ଗଲେ ।





# ନଈଟିଏ ତା ଉପରେ ଗପଟିଏ

ମୋ କଥାଟି ସରିଲା
ଫୁଲ ଗଛଟି ମରିଲା
ହଇରେ ଫୁଲ ଗଛ,
ତୁ କାହିଁକି ମଲୁ ?
ମୋତେ ଗାଈ ଖାଇଗଲା ।
ହଇରେ ଗାଈ ତୁ କାହିଁକି ଖାଇଲୁ ?
ମୋତେ ଗଉଡ଼ ଜଗିଲା ନାହିଁ......

ଜେଜେମା କଥାଟିଏ ସାରିବା ବେଳେ ଏମିତି କହୁଥିଲେ ।

କିନ୍ତୁ ମୁଁ କଥାଟି ଆରମ୍ଭ କରୁଛି ଏଇଠୁ
-ଗାଈ ଖାଇଗଲା

କିନ୍ତୁ ମୋ କଥାଟିରେ ଫୁଲ ଗଛ ମରୁନାହିଁ, ମରୁଛି-ଗାଈ । ଗଉଡ଼ ଜଗି ନାହିଁ ବୋଲି କି କେଉଁଥି ପାଇଁ କହିପାରୁନି । କିନ୍ତୁ ଗାଈଟି ମରିଯିବାରୁ ନାହିଁ ନଥିବା ଘଟଣା ଘଟିଗଲା । କି କି ମାନ ଘଟିଲା ?





ଗାଈଟିଏ ଆସିଲା । ଋଷିଙ୍କ ବିଲରେ ପଶିଲା । ଫସଲ ଯାକ ଖାଇଗଲା । କିଓ ତାର ଯଦି ଖାଇବାକୁ ଥିଲା, ଆଉ କୋଉଠି କଣ ଚରାଭୂଇଁ କି ଘାସପଡ଼ିଆ ନଥିଲା ? ସେଠିକି ତ ଯାଇ ପାରିଥାଆନ୍ତା । ନା ! ତା କଲାନି, ଋଷିଙ୍କ ଆଶ୍ରମର ବିଲରେ ହିଁ ପଶିଲା । ପଶିଲାତ ପଶିଲା, ଯାହା ଖାଇବାର ଖାଇଲା । ପୁଣି ବିଲଟାଯାକର ଫସଲକୁ ଦଳି ଚକଟି ଛାର ଖାର କରିଦେଲା । ଏଇଟା କଣ ଠିକ୍ କଲା ? ପଶୁ ଜନ୍ତୁଟାତ ଆଉ କଣ କରିଥାଆନ୍ତା ?



ସିଏ କି ଜାଣେ ବିଲ ଫିଲ
ଭୋକ କଲା ତାକୁ କଲବଲ
ସିଏ କି ବୁଝେ ରଷି ଫୁସି
ଗଲା ସେ ତାଙ୍କରି ବିଲରେ ପଶି ।
ଯାହା ପାଇଲା ଖାଇଲା ।
ସେଇଠୁ କି କି ମାନ ହେଲା ?



ରଷି ହୋଇଥିଲେ ଟୋକାଟିଏ, ଗୋଟେଇ ଥାଆନ୍ତେ ଟେକାଟିଏ, ଆଉ ତାକୁ ପକାଇଥାଆନ୍ତେ ଗାଈ ଉପରକୁ, ନହେଲେ ବାଡ଼ି ଫାଡ଼ିଟାଏ ଧରି ହୁରୁଡ଼େଇ ଥାଆନ୍ତେ ଗାଈଟାକୁ ।



ଗାଈ ହୋଇଥିଲେ ସୁଧାର

କଥା ହୋଇ ଥାଆନ୍ତା କେଉଁ ପ୍ରକାର ?

ଗାଈ ଯାଇ ଋଷିଙ୍କ ପାଖରେ ଠିଆ ହୋଇଥାଆନ୍ତା ।

ତା ଦେହ ଓ ପାଟିର ଭାଷାରେ ଜଣାଇ ଥାଆନ୍ତା- ଭୋକ ହେଉଛି । ଖାଇବାକୁ ମିଳୁ ।



ଋଷି ଯେମିତି ହେଲେ ଘାସ ବିଡ଼ାଏ ବି କଣ କିଛି ନିଶ୍ଚୟ ଦେଇ ଥାଆନ୍ତେ । ସେଥିରେ ଗାଈ ପାଇଥାନ୍ତା ଖାଇବାକୁ, ଆଉ ଋଷି ପାଇଥାନ୍ତେ ଗୋ ସେବାର ପୁଣ୍ୟ । ଗାଈଟା ତାଙ୍କୁ ସେ ସୁଯୋଗ ଦେଲା ନାହିଁ ।

ସେ ଗାଈଟା ବଡ଼ ଦୁଷ୍ଟ
ଫସଲଯାକ କରିଦେଲା ନଷ୍ଟ ।



ତା ହେଲେ ଋଷି କଲେ କଣ ?
ଋଷି ଉପାଡ଼ିଲେ କୁଶଟିଏ
ତାଙ୍କ ହାତଟା ସିନା ଧନୁ ନୁହେଁ ।
ଛାଡ଼ି ଦେଲେ ତାକୁ ଲକ୍ଷ୍ୟ କରି
ଗାଈ ଦେହରେ ସେ ଗଲା ଗଳି
ସେଇଠାରେ ଗାଈ ପଡ଼ିଲା ଟଳି ।



କିଏ ଜାଣିଥିଲା ଜୀବଟିର ଜୀବ ସେଇଠି ଯିବ । ଋଷିଙ୍କ ଠାରେ ପାତକ ଲାଗିବ । ଋଷିଙ୍କର ବୁଦ୍ଧି ହୋଇଗଲା ବଣା । ଏତେ ବଡ଼ ଦୋଷ ଲାଗିଲା କିନା । ହାତରୁ ଖସିଲେ ଅଣ ଆୟତ୍ତ । ଏହା କି ଜାଣି ନଥିଲେ ତପୋବନ୍ତ ?

ସେ ଋଷିଙ୍କ ନାଁ କଣ ? ତାଙ୍କର ସେଇ ଆଶ୍ରମ ଓ ତପୋବନ ଥିଲା କେଉଁଠି ? ସେ ପୁଣି କଲେ କଣ ?

ସେ ଗୌତମ ମହର୍ଷି । ତାଙ୍କର ତପୋବନ ଥିଲା ସହ୍ୟାଦ୍ରି- ପର୍ବତ ମାଳାର ଗୋଟିଏ ସ୍ଥାନରେ । ସେଇଠି

ତାଙ୍କର ଆଶ୍ରମ ଓ ଆଶ୍ରମର ବିଲ, ବଗିଚା । ଗିରିମାଳର ସେଇ ସ୍ଥାନ ବା ଗିରିଟିର ନାମ ଥିଲା- ବ୍ରହ୍ମଗିରି । ଆମ ଓଡ଼ିଶାରେ ବି ବ୍ରହ୍ମଗିରି ବୋଲି ଦେବ ସ୍ଥାନଟିଏ ଅଛି କିନ୍ତୁ ଏଇଟି ମହାରାଷ୍ଟ୍ରର ବ୍ରହ୍ମଗିରି । ସେଇଠି ଗୋ ବଧ ହୋଇଯିବାରୁ ତପୋବନଟି ଅପବିତ୍ର ହୋଇଗଲା । ସମସ୍ତଙ୍କ ମନ ମଉଳିଗଲା । ଋଷି ଭାରି ମନ କଷ୍ଟ କଲେ । କିନ୍ତୁ ବିପଦରେ ଭାଙ୍ଗି ପଡ଼ିବାବି ଠିକ୍ ନୁହେଁ । ମନ ଟାଣ କରି ଛିଡ଼ା ହେବାର କଥା । ଉଚିତ ଉପାୟ କରିବା କଥା । ଗୌତମ ମହର୍ଷି ସେଇଆ କଲେ ।

ଗୌତମ ଋଷି କଣ କଲେ ? ସେ ବିପଦରେ ଭାଙ୍ଗି ନପଡ଼ି ମନଟାଣ କଲେ । ଉପାୟ ଚିନ୍ତା କଲେ ।





ଗୌତମ କଠୋର ତପସ୍ୟାରେ ବସିଲେ । ଶିବଙ୍କୁ ସୁମରଣା କଲେ । ତାଙ୍କ ପରି ଋଷିଙ୍କ ତପସ୍ୟା ବିଫଳ ହେବାର ନୁହେଁ । ଶିବ ସେଇ ତପସ୍ୟାରେ ନଆସନ୍ତେ କେମିତି ? ଆସିଲେ ଆଉ ଆମୂଳଚୂଳ ସବୁ ଶୁଣିଲେ ।



ଏତେ ବଡ଼ ଋଷି ଜାଣତରେ ହେଉ କି ଅଜାଣତରେ ହେଉ ଭୁଲଟାଏତ କରି ପକାଇଛନ୍ତି । ସବୁ ଦୋଷ ମାନୁଛନ୍ତି । ପ୍ରାୟଶ୍ଚିତ୍ତ କରିବାକୁ ପ୍ରସ୍ତୁତ । କଣ କରାଯିବ ? ଶିବଙ୍କର ଦୟା ହେଲା ।

ଶିବ ଯେତେବେଳେ ସନ୍ତୁଷ୍ଟ ହେଲେ, ଦୟା କଲେ, ନହେବ କଣ ? ମଲା ଗାଈ ଜୀବନ ପାଇବ । ତପୋବନ ପୁଣି ପବିତ୍ର ହେବ । କିନ୍ତୁ ସେଥିପାଇଁ ସେଠାରେ ଗଙ୍ଗା ଅବତରଣ କରିବା ଦରକାର । ଶିବ ଗଙ୍ଗାଧର, ତାଙ୍କ ଜଟାଜୁଟରେ ଗଙ୍ଗାମାତା ଥାନ୍ତି । ସେ ତାଙ୍କୁ ଅବତରଣ ଲାଗି ଆଦେଶ ଦେଲେ ।



ଗଙ୍ଗା ବଡ଼ ମନେଇ, ମନ କଲେ ଚଳନ୍ତି, ନହେଲେ ନାଇଁ, ସେ ଚୁପ୍ ରହିଲେ । ଶିବ ବି ସହଜ ଦେବତା ନୁହନ୍ତି । ଭାରି ରାଗୀ । ଦେଖିଲେ ଗଙ୍ଗା ତାଙ୍କ ବୋଲ ତତ୍‌କ୍ଷଣାତ୍ ମାନିବେ କଣ, ଟାଳଟୁଳ କରୁଛନ୍ତି । ସେ କ୍ରୋଧରେ ଥରି ଉଠିଲେ । ମୁଣ୍ଡକୁ

ଏତେ ରାଗରେ ଝାଙ୍କି ଦେଲେ ଯେ, ଜଟାକୁଟ ଫିଟିଗଲା । ସେଇ ଜଟାର ଆଘାତ ପାହାଡ଼ ଦେହରେ ଏମିତି ଲାଗିଥିଲା ଯେ, ସେଇ ଚିହ୍ନଟା ଏବେ ବି ସେଠାରେ ଅଛି । ସେଇଠୁ ?

ସେଇଠୁ ହେବ କଣ । ଗଙ୍ଗା ଅବତରଣ କଲେ । ମରିପଡ଼ିଥିବା ଗାଈ ଉପରେ ଦେଇ ପ୍ରବାହିତ ହେଲେ । ମଲା ଗାଈ ଜୀଇ ଉଠିଲା । ଏଇଠି ତାଙ୍କ ନାମ ହେଲା- ଗୋଦାବରୀ ।



ତପୋବନ ତାଙ୍କର ପ୍ରବାହରେ ପବିତ୍ର ହେଲା । ଶିବଙ୍କର ଦର୍ଶନ ଓ ଆଶୀର୍ବାଦ ପାଇ ଗୌତମଙ୍କ ପାପ ମୋଚନ ହେଲା । ଶିବ ସେଠାରେ ସେଇଦିନୁ ତ୍ର୍ୟମ୍ବକେଶ୍ୱର ନାମରେ ପୂଜା ପାଉଛନ୍ତି ।





ସଂସ୍କୃତ ଭାଷାରେ ଶିବଙ୍କର ସ୍ତବଟିଏ ଅଛି । ସେଥିରୁ ଗୋଟିଏ ପଦକୁ ଓଡ଼ିଆରେ କହିଲେ ହେବ-

ସହ୍ୟାଦ୍ରି ଶଇଳ ବିମଳ ଶିଖରେ
ଗୋଦାବରୀ ନଦୀ କୂଳେ
ତ୍ର୍ୟମ୍ବକ ଈଶ୍ୱର ଦରଶନ କଲେ
ପାତକ ନରହେ ତିଳେ ।



ଶ୍ରୀରାମ, ତାଙ୍କର ବନବାସ କାଳରେ ଏଇ ଅଞ୍ଚଳରେ ରହୁଥିଲେ । ଏଇଠି ଗୋଟିଏ ସ୍ଥାନରେ ଲକ୍ଷ୍ମଣ ସୁର୍ପଣଖାର ନାସିକା କାଟି ଦେଇଥିଲେ । ତେଣୁ ଜାଗାଟିର ନାଁ ହୋଇଛି- ନାସିକ । ଏବେ ତାହା ଗୋଟିଏ ସୁନ୍ଦର ସହର । ତ୍ର୍ୟମ୍ବକେଶ୍ୱର ନାସିକଠାରୁ ୪୫ କିଲୋମିଟର ।



ସହ୍ୟାଦ୍ରି, ମହାରାଷ୍ଟ୍ରରେ । ଗୋଦାବରୀ ସେଠାରୁ ବାହାରି ବଙ୍ଗୋପସାଗରରେ ମିଶିଛି । ସେଇ ଜାଗାଟି ଆନ୍ଧ୍ରପ୍ରଦେଶର ରାଜମହେନ୍ଦ୍ରି ।

ଆମ ଦେଶର ସ୍ଥାନେ ସ୍ଥାନେ ସୁନ୍ଦର ଦେବସ୍ଥାନ, ପବିତ୍ର ନଦୀ, ପର୍ବତ ଓ ଗିରିମାଳା ଅଛି । ତା ଉପରେ ଜାହାଣୀମାନ ବି ଅଛି । ପୁଣି ଡାଲେ ପାଣି ରଖି, ଗଙ୍ଗା, ଯମୁନା, ଗୋଦାବରୀ, ସରସ୍ୱତୀ, ନର୍ମଦା, ସିନ୍ଧୁ, କାବେରୀ ଏଥିରେ ବିରାଜିତ ହୁଅନ୍ତୁ ବୋଲି ପବିତ୍ର ମନରେ ଡାକିଦେଲେ, ତାହା ପବିତ୍ର ହୋଇଯାଏ । ଏପରି ବିଶ୍ୱାସ ଚଳେ । ସେମିତି କୁରୁକ୍ଷେତ୍ର, କାଶୀ ଆଦି ନାନା ତୀର୍ଥକୁ ମଧ୍ୟ ଗୋଟିଏ ସ୍ଥାନରେ ବିରାଜମାନ ହେବାକୁ ଆବାହନ କରାଯାଏ । ଆମ ମନ ଓ

ବିଶ୍ୱାସର ଟାଣ ଏତେ । ଭାରତ ଭୂମି ଓ ତାର ନଦୀ, ପର୍ବତ ଆଦି ଆମ ପାଇଁ ଏତେ ପବିତ୍ର । ଏତେ ମହିମାଭରା । ପୁଣି କେତେ ଦୂର ଦୂରାନ୍ତରେ ଥିଲେ ସୁଦ୍ଧା ଅତି ପାଖର । ଖୁବ୍ ଆପଣାର । ଭକ୍ତ କବି ମଧୁସୂଦନ ରାଓ ଲେଖିଥିଲେ-

ତୁହିମା ଜନମଭୂମି ପବିତ୍ର ଭାରତ ଭୂମି
ତୋହରି ସନ୍ତାନ ଆମେ ଅଟୁ ସରବେ
ତୋର ଶ୍ରୀ ଚରଣ ସେବା ପାଇଁ ମନ ପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦ ରବେ
ତୋ ଆନନ୍ଦେ ହୋଇବା ସୁଖୀ..............



